ମହାପୁରୁଷ ଅଚ୍ୟୁତାନନ୍ଦ ଦାସ କୃତ

# ଅଷ୍ଟଗୁଜ୍ଜରୀ



ପ୍ରକାଶକ—ଦଧ ଅର୍ଜୁନ କମ୍ପାନୀ, କଟକ—୯

ନୂତନ ସଂସ୍କରଣ—୧୯୮ ମୂଲ୍ୟ ୪୦-୫୦ ଟଙ୍କା

Digitized by srujanika@gmail.com

# ଅଷ୍ଟଗୁଚ୍ଛରୀ

—●—

ଅଚ୍ୟୁତ ଗୋଲକନାଥଂ ସାକ୍ଷାତ୍ ବିଷ୍ଣୁ ସ୍ୱରୂପକଂ
କଳିଯୁଗେ ବହୁରଙ୍ଗ ଅଷ୍ଟଗୁଚ୍ଛସ ପ୍ରକାଶିତଂ । ୧ ।

ରାଗ—ରାମକେରୀ

ଶାନ୍ତ ବନୋଦିଆ ଠାକୁର ଭକ୍ତ ବତ୍ସଳ ହରି ।
ଭକ୍ତଙ୍କ ପାଇଁ କଳେବର ଦଶ ମୂରତି ଧରି । ୨ ।
ଭକ୍ତ ତୁମ୍ଭଙ୍କ କହିବ ଭକ୍ତ ବୋଲରେ ଥାଅ
ଭକ୍ତ ଦେଶିଲ ହସ୍ତିନାକୁ ଦ୍ରୁତ ଟଣରେ ଯାଅ । ୩ ।
ଭକ୍ତ ଦେଖାଇଲ ସ୍ତମ୍ଭକୁ ସ୍ତମ୍ଭ ହେଲ ଜଦତ ।
ଭୃତ୍ୟର ଭୃତ୍ୟ ହରି ଭୃତ୍ୟ ଭଣେ ଦୀନ ଅଚ୍ୟୁତ । ୪ ।

—※—

ବିଷୟା ରସରେ ମଜ୍ଜିଲି ସାଧୁ ସଙ୍ଗକୁ ତେଜି ।
ଚରଣ ତନୟା ତନୁକୁ ଦିବା ରଜନୀ ହେଜି । ୧ ।
ତୁମ୍ଭ ନାମ କାହିଁ ଜାଣିବି ପ୍ରଭୁ ଜଗଜ୍ଜୀବନ ।
ପ୍ରକୃତି ମୋତେ ଭୁଲାଇଲା ସୁଧାରସ ଆପ୍ୟାନ । ୨ ।
ପତିତପାବନବାନା ସେ ପଦ୍ମେ ଶୁଣିଲି ତୋର ।
ଦୀନ ଅଚ୍ୟୁତ ଯେ ଭଣଇ ତେଣୁ ଭରସା ମୋର । ୩ ।

—※—

ଦୁର୍ଜ୍ଜନ ଲୋକକୁ ଡରଇ ପିଠି ଯାତନା ଦେଇ ।
ନିଃରେଖ ହୋଇ ପଡ଼ିଅଛି ଭବସାଗରେ ମୁହିଁ । ୧ ।
ତୁମ୍ଭେ ଯେବେ କୃପା କରିବ ମୋତେ ଥିବ ଆବୋଣ ।
କୃତାନ୍ତଙ୍କ କଷ୍ଟ କରିବ ବୋଧ ସତ୍ତ ଅଇଣ । ୨ ।

Digitized by srujanika@gmail.com

ମାଣ୍ଡୁକକୁ ତୁମ୍ଭେ ରଖିଲ କଳକଲେ କୁରୁପତି
ଯାହାକୁ ତୁମ୍ଭେ ଯେ ରଖିବ ଭଣେ ଦୀନ ଅଚ୍ୟୁତ ।୩

— ❀ —

ତୁମ୍ଭର ଭୃତ୍ୟ କେ ହୋଇବ ବୋଲୁ ମଣ୍ଡଳେ କହ ।
ସେ ମୋତେ ତୁମ୍ଭ ଯମକଣ୍ଠ ଛୁଟେ କାଳୁ ନ ବହ । ୧ ।
ତୁମ୍ଭ ସେବା କାହୁଁ ଜାଣିବ ମୁଁ ଭକ୍ତଙ୍କ ସେବା ।
ସେବାରେ ସୀମା ନ ଜାଣିଲା ହୁଡ଼ ବୋଇଲ ଅବା ।୨ ।
ଶ୍ରୀବତ୍ସ ଅଙ୍କିତ ଏମାନେ ଯେଉଁ ଚରଣେ ନତ ।
ଯହିଁ ପଦ୍ମଯୋନି ଭୁଲନ୍ତି ଭଣେ ଦୀନ ଅଚ୍ୟୁତ । ୩ ।

— ❀ —

ମାୟାଜାଲ ଯୋଗେ ଡେଡ଼ିଲି ଜଗ ନ ଦିଶେ କୂଳ ।
ଭ୍ରାତାବନ୍ଧୁ କହ କଣବେ ମୋତେ ନୋହିଲ ସ୍ଥଳ ।୧
ରଖିଲେ ରଖ ଜଗନ୍ନାଥ ଆଉ ନାହିଁ ରଖନ୍ତା ।
ତୁମ୍ଭେ ନ ରଖିଲେ ଭାସିଲି ଶୁଣି ହୁଅ ଅଚିନ୍ତା । ୨ ।
ଶ୍ରୀବତ୍ସ ବୋଲି ଏକ ଦ୍ୱିଜ ହୃଦେ ମାଇଲା ନାଥ ।
ତୁମ୍ଭେ ହୃଷ୍ଟ ହୋଇ ହସିଲ ତୁମ୍ଭ ମହିମା ଅନ୍ତ । ୩ ।
ବଜ୍ରପି ସର୍ବ ହଙ୍କ ଶାଳେ ବେତ ଧର ଖୁଣ୍ଟିଆ ।
ଭୃତ୍ୟକୁ ନୃପତି କରାଅ ପ୍ରଭୁ ଏତେ ହଠିଆ । ୪ ।
ବ୍ୟାଧ ଅଜାମିଳ ଗଣିକା ତାଙ୍କୁ ଦେଲ ସ୍ୱଗତି ।
ତୁମ୍ଭେ ଯେ ପତିତ ପାବନ ଭଣେ ଦୀନ ଅଚ୍ୟୁତ । ୫ ।

—●—

ତୁମ୍ଭ ଶ୍ରୀମୁଖରେ ଜଣାଉଛି ଗୁରୁ ସନ୍ଦେହ କଥା ।
କେ ଗୁରୁ କେ ଶିଷ୍ୟ ହୁଅନ୍ତା କାହିଁ ମୁଣ୍ଡାନ୍ତି ମଥା ।୧।
ଅବିବେକ ହୋଇ ରହିଲି ଶୁଣି ହେଲି ଚକିତ ।
ଦିବା ରଜନୀ ଗୁଣୁଥାଇ ଶାନ୍ତ ନୋହିଲ ଚିତ୍ତ । ୨ ।

Digitized by srujanika@gmail.com

କେ ଦେବତା କେତ୍ରୁ ଭକତ କେ କାହାକୁ ପୂଜିଲା ।
କେ ଭୋଗ ରାଗ କରଉଛୁ କେହୁ ଗୋଟା ଭୁଞ୍ଜିଲା ।୩
କେ ଯନ୍ତ୍ର କେ ମନ୍ତ୍ର କେଉଁଠି କେଉଁ ଗୋଟା ଜୀବସ
କେଜଳା ଛନ୍ଦଁ ଦ୍ରବ୍ୟ ବାଳ କେହୁ ଗୋଟା ହରଷ ।୪
କେ ନର ଗୃଞ୍ଜିର ଚନଙ୍ଗ କେ କାହିଁରେ ଆଶ୍ରମ ।
କେ ଅଙ୍ଗେ ଚନ୍ଦନ ଲେପନ୍ତୁ କେଉଁ ପିଣ୍ଡ ଦହନ ।୫।
ସ୍ଥାପନ କେଉଁଠି ଜୀବ ଜନ୍ତୁ ସବୁ ଘଟ ଏକଇ
ଲୀଳ କମନ୍ତେ ନାନାକାର ଭିଣେ ଜାନ ଅଚ୍ୟୁତ ।୬



ଗୀତା ଭାଗବତ ପୁରାଣ ଶ୍ରୁତି ବେଦ ପୁଚ୍ଛିଲି
ତୋ ବିନୁ ମୋତେ ଗତି ନାହିଁ ତୀର୍ଥ ବ୍ରତ ଲେଙ୍ଗ ।୧
ଗୁରୁ ଶବଦ କୃଷ୍ଣ ବ୍ରହ୍ମଜ୍ଞାନ କହିଲେ କର୍ଣ୍ଣେ ।
ସତ ଶାନ୍ତ ଦୟା କ୍ଷମାକୁ ହେଉ ଚୈତନ୍ୟ ମନେ । ୨ ।
ଏହି ଚରିଲେକେ ବୋଲନ୍ତି ଗତି ପରତେ ମନୁ ।
ଧିରେଣ ଅନ୍ଧତିମିର କି ସନ୍ଧୁ ଦର୍ଶନେ ଭାନୁ । ୩ ।
କମଳ କେଶର ଦଳରେ ଲୀଳା କରେ ଭ୍ରମର ।
ଶୂନ୍ୟରେ ଜ୍ୟୋତି ଉର୍ମି ଜ୍ୟୋତି ଶୂନ୍ୟ ଚତୁମ୍ଭେ କେଶର
ଛପନ କୋଟି ଜୀବଜନ୍ତୁ ତେତିଶ କୋଟି ଦେବ ।
କହେ ଅଚ୍ୟୁତ କୃଷ୍ଣ ଭକ୍ତ ପାଦେ ବାସନା ଥିବ ।୪।



ନ ଜାଣିମୁଁ ଜଣାଉଛି ହେ ମଣୁଥିବ କେଶବ ।
ଦିବା ରଜନୀ ତିଳେ ତିଳେ ମୋର ହୃଦେରେ ଥିବା ୨।
ଜବ ଥାଉଁ ଥାଉଁ ଚରଣ ପ୍ରଭୁ ମାଗଇ ତୋତେ ।
ପ୍ରାଣ ପ୍ରୟାଣ ସମୟକୁ ଭ୍ରମ ଲାଗିଲା ମୋତେ । ୧ ।

Digitized by srujanika@gmail.com

କେଉଁ ବରଷ କେଉଁ ମାସକେ ବେଳରେ ମୃତ୍ୟୁ ।
କାହୁଁ ପାଇ କାହିଁରହିବ ମୋର ନୋହିବ ଦେହୁ। ୩

ଜ୍ୟେଷ୍ଠ ଶୁକଳ ଏକାଦଶୀ ସେ ଦିନ କୁ ମୋ ଆଶା
ଅଭୟ ଚରଣେ ମାଗଇ ମୋର ଏହି ଭରସା । ୪ ।

ଚିତ୍ରୋତ୍ପଳା ନଦୀ ଉତ୍ତର ଗ୍ରାମ ନେମ୍ବାଳ ସ୍ଥାନ ॥ ୫
ସେ ସ୍ଥାନେ ଏଦେହ ରହିବ ମୋର ଏହି ଧିଆନ ।
ଛପନ କୋଟି ଜୀବଜନ୍ତୁ ନହିଁ କରନ୍ତି ଦାତ
ଭୃତ୍ୟ ଭୃତ୍ୟର ଭୃତ୍ୟ ମୁହିଁ ଭଣେ ଦାନ ଅଚ୍ୟୁତ । ୬।

ଇତି ଶ୍ରୀ ଅଚ୍ୟୁତାନନ୍ଦ ବିରଚିତଂ ଅଷ୍ଟଗୁହ୍ୟ ସମ୍ପୂର୍ଣ୍ଣଂ

## ପରମଜ୍ଞାନ ଗୀତା

ପୃଥ୍ୱୀ ଆପ ତେଜ ବାୟୁ ଆକାଶ ।
ପଞ୍ଚ ଭୂତ ଯେଣୁ ଦେହ ପ୍ରକାଶ ।୧।
ମନ ଯେ ସୁମନ ମନ କୁମନ ବିମନ ।
ଅମନକୁ ଯେଉଁକର ଏ ପଞ୍ଚଯେ ମନ। ୨
ଶୁଣ ହେ ସୁଜନ ଜନ ଏଥୁ ସାର ନାହିଁ
ସାର ଉପଦେଶ ଭବ ବାଛି ଦେଲି କହି
ଜାଣିବେ ସୁଜ୍ଞଜନ ନ ଜାଣିବେ ଆନ୍ୟ ।
ଏ କଥା ସତ୍ୟ ଅଟଇ କହୁଅଛି ଶୁଣ ୫
ଦୁର୍ଲ୍ଲଭ ଏ ନରଘଟ 'ଥି ଶ୍ରେଷ୍ଠ ନାହିଁ ।
ଘଟକୁ ଛାଡ଼ିଲେ ମନ ପାଇବୁ ତୁ କାହିଁ ୫
ଜଗତେ ଟୂରିଛି ସେହି ନ ଦେଖନ୍ତିକେହି ।
ପ୍ରତିମା ପିତୁଳ ପୂଜ ହେଉଛନ୍ତି କାଇ ୬
ନିଶ୍ଚଳ ଆସନେ ବସି ସାଧନା ଶିଖିବ ।
ମେରୁକୁ ଟଳଖି ବ୍ରହ୍ମରନ୍ଧ୍ରେ ଦୃଷ୍ଟି ଦେବ ୭

Digitized by srujanika@gmail.com

ଚଉଦଳ ବଳେ ମନତୋର ନାସାଗ୍ରେ ରହିବ ।
ତ୍ରିକୁଟ ସନ୍ଧାରେ ତୋର ଅଗ୍ନି ବାହାରିବ । ୮ ।
ଶୂନ୍ୟରେ ଖେଳୁଛନ୍ତି ହଂସ ଶୂନ୍ୟରେ ଖେଳୁଛି ।
ଗଗନ ଶିଖରେ ନେଇ ବଳାଇବୁ ମଛି । ୯ ।
ତେବେ ସେ ପରମ ଆତ୍ମା ବୃଷଯୁଗେ ଥିବ ।
କମଳକେଶରେ ପଶି ମାଧୁରୀ କରିବ । ୧୦ ।
ମୂଳ କମଳକୁ ଚାପି ବସିବ ସଧୀରେ ।
ମନକୁ ନେଇ ବସିବ ବ୍ରହ୍ମରନ୍ଧ୍ର ଠାରେ । ୧୧ ।
ସୂର୍ଯ୍ୟ ଚନ୍ଦ୍ର ଠାରେ ବାଟ ଗୋଲକକୁ ଥାଇ ।
ଦେଖୁ ଦେଖୁ ମତ୍ତଗଜ ଗମନ କରଇ । ୧୨ ।
ନିଶ୍ଚଳ ହୋଇଣ ସେହି ବାଟେ ଗଲଯିବ ।
ଗୋଲୋକ ମଧରେ ଯାଇଁ ପ୍ରବେଶ ହୋଇବ । ୧୩ ।
ଗୋଲୋକ ମଧରେ ଅଛି ଅପୂର୍ବ ରହସ୍ୟ ।
ରହସ୍ୟ ଚେଜଣ ପ୍ରଭୁ ଚଳବେ ପ୍ରବାସ । ୧୪ ।
ଆଖି ଥାଉଁ ଥାଉଁ ଲୋକେ ହେଉଛନ୍ତି କଣା ।
ଡେଟା ଥାଉଁ ଥାଉଁ ଲୋକେ ହେଉଛନ୍ତି ବଣା । ୧୫ ।
ତୋହର ଦେହରେ ପ୍ରଭୁ ଜକ ଜକ ହୋଇ ।
ଆଗ ଦୃଷ୍ଟି ପଛ କଲେ ଦେଖିବୁ ସେ ଭୂଇଁ । ୧୬ ।
ମାକଡ଼ଶା ସୂତା ପ୍ରାୟ ତହିଁ ଦ୍ୱାର ଦିଶି ।
ତହିଁପରେ ଆତ୍ମାଙ୍କ ଜାବନ୍ତି ପ୍ରକାଶି । ୧୭ ।
ମନୁଷ୍ୟ ଜୀବନ ହୋଇ ଅଟେ ଅକାରଣ ।
ଶୂନ୍ୟ ପୁରୁଷକୁ ହେନେନ ଚିହ୍ନିଲୁ ପୁଣ । ୧୮ ।
ଆଖିର ପିଚୁଳ ଯେବେ ଅଲଗା କରିବୁ ।
ତେବେ ସେ ପରମ ଆତ୍ମା ଦୃଷ୍ଟିରେ ଦେଖିବୁ । ୧୯ ।
ଦୃଷ୍ଟିରେ ଦେଖିବୁ ମନ ଲକ୍ଷ୍ୟରେ ରଖିବୁ ।

Digitized by srujanika@gmail.com

ଅଣାକାର ମନ୍ତ୍ରକୁ ତ୍ରୁହ୍ମଦରେ ଜପିବୁ । ୨୦ ।
ମୂଳ କମଳରେ ମନ ଗଣେଶ ଜନ୍ତି ।
ଗୁହ୍ୟ ଚକ୍ରେ ପରେ କାମେଶ୍ୱର ବଦ୍ଧରନ୍ତି । ୨୧ ।
ନାଭିଚକ୍ର ପରେ ବ୍ରହ୍ମା ରହିଛନ୍ତି ଧାର୍ମି ।
ହୃଦଚକ୍ରେ ପରେ ବିଷ୍ଣୁ ବରଦନ୍ତି ହେବ । ୨୨ ।
ନାସାଚକ୍ରେ ଦେବେଚନ୍ଦ୍ର ହୋନ୍ତି ଗମାଗମ ।
ଲଲାଟ ପାଟଣ୍ଡା ତେଜ ଚଳବ ବଦନ । ୨୩ ।
ଶୂନ୍ୟରେ ଦଶିବ ଯାଇ କେଶର ମଧ୍ୟରେ ।
ଅନନ୍ତ ଟସ୍ୱନ ନକ୍ଷେତ୍ର ଦେଖିବୁ ନେତ୍ରରେ । ୨୪ ।
ଏହି ଘ୍ରବ ସାର ନକ୍ଷେତ୍ର ସାକ୍ଷ ବୋଲି କହି ।
ଅନାଦି ଅନାମ ନାମ ଠୁଳ ଶୂନ୍ୟ ଦେହି । ୨୫ ।
ଏହିଦ୍ୱାରେ ମନ ଯେବେ ନିଶ୍ଚଳ ରହିବ ।
ଅନନ୍ତ ଟସ୍ୱନ ତେବେ ଆଗେ ପ୍ରକାଶିବ । ୨୬ ।
ଶୋଇବା ବସିବା କବା ଚଳିବା ଠାବରେ ।
କବା ଦିନ କବା ରାତ୍ର ଜିହ୍ୱାପ୍ରୁ ଅଗ୍ରରେ । ୨୭ ।
ଏହି ଭାବ ଅଣହୃଦ ଅଟଇଟି ଯେହି
ଏହିଭାବ ଯାକୁ ଦୃଶ୍ୟ ନକ୍ଷେତ୍ର ଦାସ ସେହି ୨୮ ।
ଅଜପା ଅକ୍ଷରେ ଚହ୍ନି ଲାଗିଛି ଭଜନ ।
ଚନ୍ଦ୍ର ସୂର୍ଯ୍ୟ ଗମାଗମ ଅନ୍ୟ ଭୁବନ । ୨୯ ।
ଠୁଳ ଶୂନ୍ୟ ପରେ ନିତ୍ୟ ରାସ ଯେ ଲାଗିଛି ।
ଅପୂର୍ବ ପଦାର୍ଥ କେହି ଭ ବ ନ ପାରନ୍ତି । ୩୦ ।
ଅଣ ହୂନ୍ଦେ କରୁଥିବି ପ୍ରଭୁଙ୍କୁ 'ଭାବନା ।
ପବନ ନିରୋଧି ଜ୍ୟୋତି ଉପରେ ବାସନା ୩୧ ।
ଦଶଦ୍ୱାର ବାଟ ତାର ଭେଦ କବାଟ ।
ଯିବାକୁ ସଙ୍କଟ ତାର ମୂଳ ରହେ ବାଟ । ୩୨

Digitized by srujanika@gmail.com

ତେଜ ନାଶନ ବଟ କେଉଁ ଠାବକୁ କହ ।
କେଉଁଠି ସହସ୍ର କଟ ଥାଳ ଚନ୍ଦ୍ର ରହ ।୩୩।
ଷଡ଼ ଅଇରକ ମନ ଚଞ୍ଚଳ କାଟିବୁ ।
ଯୋଗ ରୂଢ଼ ପୁରୁଷ ଯେ ନଷ୍ଟପୁ ହୋଇବୁ ।୩୪।
ହରେକୃଷ୍ଣ ମନ୍ତ୍ରକୁ ମୁଁ କି ଉପମା ଦେବ ।
ବ୍ରହ୍ମା ଶିବ ଯାହାକୁ ସେ ସଦା ଛନ୍ତି ଭାବ ।୩୫।
ଓଁକାରକୁ ଧରଣ ଯେ ଅଣଗୁଣ ଦ୍ୱାର ।
ଅମନ ଶିଖରେ ମନ-ଗଜ ବନ୍ଦୀ କର ।୩୬।
ଗଜକୁ ଚିହ୍ନିଲେ ମନ ଆନନ୍ଦ ହୋଇବୁ ।
ଅମୂଲ୍ୟ ପଦାର୍ଥ ସଙ୍ଗେ ମନ ବଳାଇବୁ ।୩୭।
ଶ୍ୱେତ ପୀତ ଲୋହିତ ଯେ ନୀଳବର୍ଣ୍ଣ ରୂପ ।
ହୀରକ ବର୍ଣ୍ଣକୁ ଘେନି ପଞ୍ଚବର୍ଣ୍ଣ ସର ।୩୮।
ପଞ୍ଚଆତ୍ମା ଧ୍ୟାନରୁ ଯେ ତହିଁ ପରକାଶ ।
ତହିଁପରେ ଜାଣେଟି ଏକାକ୍ଷର ପୁରୁଷ ।୩୯।
କର୍ଣ୍ଣଗୁରୁ ଉପରେ ଯେ ଜ୍ଞାନଗୁରୁ ସାର ॥
ଗୁରୁ ନାମ ଧରଣ ଯେ ଭବ ସିନ୍ଧୁ ପାର ।୪୦।
ଗୁରୁହାଦ୍ଦ ଗୁରୁସାଦ୍ଧ ଗୁରୁସାଦ୍ଧ ସାର ।
ଗୁରୁ ତନୁ ପିଣ୍ଡ ଅଜ ଭବୁ ପାର ନାହିଁ ।୪୧।
ହଂସାହଂସା ମହାମନ୍ତ୍ର ଜାଣର ଭଜନ ।
କ୍ଷଣହେ ବିଶ୍ରାମ ନାହିଁ ନିଜେ ରାତ୍ର ଦିନ ।୪୨
ରାତ୍ର ଦିବସରେ ଷୋଳ ଘଡ଼ିଏ ଭଜନ ।
ଏକୋଇଶ ଶତ ଶତ ଏଠେ ସେ ଭଜନ ।୪୩।
ଯେତେକ ସଙ୍ଖ୍ୟା ଭଜନ୍ତି ବେନି ହୋଇ ।
ଦେହ ଭଜବାକୁ ପାର୍ଥ ଅଜ ନାଥ ନାହିଁ ।୪୪।

Digitized by srujanika@gmail.com

ନିଶ୍ଚଳ ଆସନେ ବସି ଚଞ୍ଚଳ କାଟିବ ।
ଜାନୁ ଯୁଗଳରେ ବେନି ପାଣିକି ଥାପିବ । ୪୫ ।
ମଳଖି ରଖି ଷୋଳ ଉମ୍ବରୁ ମେରୁଦଣ୍ଡ ।
ସୁଷୁମ୍ନା ମଧ୍ୟରେ ସେ ନିପଟଳ ପିଣ୍ଡ । ୪୬ ।
ଆଜ ଷଡ଼ସ୍ଥାନେ ମରୁତ ବାରେଣି ଖଞ୍ଜିବ ।
ଆପଣାର ନାସିକା ଅଗ୍ରକୁ ଚାହିଁଥିବ । ୪୭ ।
ଧ୍ୟାନରେ ଭେଦିବ ନାଦ ତେବେ ସିନା ସ୍ଥିର ।
ନାମରୂପ ଜ୍ୟୋତିରୂପ ଦେଖିବ ମୋହର । ୪୮ ।
ଗୁରୁବାକ୍ୟ ଗୁରୁବାକ୍ୟ ଗୁରୁବାକ୍ୟ ବାକ୍ୟ ।
ଗୁରୁବିନୁ ପାର୍ଥ ଆଉ ପରିମାଣ ନାହିଁ । ୪୯ ।
କହଇ ଅଚ୍ୟୁତ ଦାସ ଏହି ଜ୍ଞାନେ ରସ
ରସକୁ ପିଇଲେ ମନ ହୋଇବ ସନ୍ତୋଷ । ୫୦ ।
ଶୁଣ ହେ ସୁବୁଦ୍ଧି ମନ କର ଅନୁକୂଳ ।
ଗୋବିନ୍ଦ ନାମକୁ ଚିହ୍ନ କରିଥିବୁ ମୂଳ । ୫୧ ।
ବ୍ରହ୍ମଦ୍ୱାରେ ଅଜପା ଭଜନ ଲଗିଅଛି ।
ଚନ୍ଦ୍ର ସୂର୍ଯ୍ୟ ଗମାଗମ କେହି ନ ଜାଣନ୍ତି । ୫୨ ।
ମନକୁ ନେଇଣ ରଖ ଶତାବର୍ତ୍ତ ପରେ ।
ତେବେ ତୋ ରହିବ ମନ ପାଦପଦ୍ମଠାରେ । ୫୩ ।
ଆସୁଛି ଯାଉଛି ସେହୁ ବାରଣ ନୋହୁଛି ।
ଅଣାକାର ପୁରୁଷ ସେ କେହି ନ ଚାହୁଁଛି । ୫୪ ।
ଗୋଲ୍ହାଟ ଉପରିରେ କାଢିଛି ପାଟଣା ।
ଗମି ନ ପାରଣ ଚହିଁ ହେଉଛନ୍ତି ବଣା । ୫୫ ।
କହଇ ଅଚ୍ୟୁତ ଦାସ ଏହି ଜ୍ଞାନେ ରସ ।
ରସକୁ ପାଇଲେ ମନ ହୋଇବ ସନ୍ତୋଷ । ୫୬ ।

Digitized by srujanika@gmail.com

ନ ତପ ଜପ ମୁ କରିବ କିଛି ଜାଣଇ ନାହିଁ ।
କେବଳ ମୋହର ଅନାଦି ପ୍ରଭୁ ପାଦରେ ଧାଇ ।୫୭।
ସର୍ବଦା ଲାଗିଛି କୈବଲ୍ୟ ଭକ୍ତ ଗୋଲକ ପୁରେ ।
ବ୍ରହ୍ମଜ୍ଞାନୀ ଲୋକ ସେଠାରେ ରହିଛନ୍ତି ଲୟପୁରେ । ୫୮।
ଏକା କଳସୀକି ଖୋଜିଣ ବେଗେ ହୋଇବୁ ପାର ।
କଳସୀ ମିଳିଲେ ହୋଇବ ମନଶାନ୍ତି ତୋହର ।୫୯।
ଜଗତେ ପୂରଣ ରହିଛି ସର୍ବ ଘଟ ମଧ୍ୟେଣ ।
ଘଟ ଗୁଡ଼ିଗଲେ ତୋହର ପିଣ୍ଡ ହେବ କାରଣ । ୬୦।
ଓଲଟ ଉଜାଣି ବହୁଛି ବେଗେ ଜଗ ତୁ ଧାର ।
ପଦ୍ମକୁ ଧଇଲେ କେଶର ମଧ୍ୟେ ପାଇବୁ ସାର ।୬୧।
କାରଣ ବେଳକୁ ଭୁଲି ଯେ କାରଣକୁ ପାଇବୁ ।
ଓଲଟି ବୃକ୍ଷକୁ କ୍ଷେପିଣ ବେଗେ ଚଳିଣ ଯିବୁ ।୬୨।
ଗୋଲକ ହାଟରେ ପ୍ରଭୁଙ୍କୁ ତେବେ ଭେଟ ପାଇବୁ ।
ପ୍ରେମରସ ସୁଧା ପାନରେ ସଦା ଭୋଳ ହୋଇବୁ ।୬୩

ରାଧାକୃଷ୍ଣଙ୍କୁ ତୁ ମିଳାଇ ମନ ମଧ୍ୟରେ ରହି ।
କାଳିଆ ପାଦରେ ଭରସା ଧନ ଅଚ୍ଛୁତ କହି ।୬୪।

ଯମ ଯନ୍ତ୍ରଣାରେ ପଡ଼ିଣ ଦିନେ ହୋଇବୁ ମୋହ ।
ସବୁ ଅକାରଣ ହୋଇବ ଅଜ ରଣ ତୋ ଏ ଦେହ ।୬୫

ଜଗି ନ୍ଯାଗିଲେ ତୁ ପାଇବୁ ମନ ଅବୁଝା ମୂଢ ।
କେବଳ ତୋହର ଅଇଶ ସବୁ କରୁଛି ଷଣ୍ଢ ।୬୬।
କାଳିଆ କାଳିଆ ହୋଇଣ ମୁ ଯେ ହୋଇଲି ବାଇ ।

କାଳିଆ ପାଦରେ ଭରସା ଧନ ଅଚ୍ଛୁତ କହି ।୬୭।

ସାଧୁ ଜନ ରସ ପିଇଣ କଢ଼ି ଜନ୍ମ ହେବେ ।
ଅଜ୍ଞାନୀ ଲୋକ ନନ୍ଦବେ ଗିଛେ ଅଚ୍ଛୁତ ହେବେ ।୬୮।

— ସ ମା ପ୍ତ —

Digitized by srujanika@gmail.com

ନୈୟମ୍ୟା ଭଜନ

ଓ ନମଃ ଜ୍ଞାନଗୀତା ।

ଅମରାବତୀ ପର୍ବ କୋଣେ ଗାମ ନନ୍ଦିଆ ନାମ ।
ସେହିଠାରେ ବସି ସଦ୍‌ଗୁରୁ ପୁରୁଷୋତ୍ତମ ।୧ ।
ଜ୍ଞାନ ଧନ ମୋର ନାହିଁ ଗୋ କାହ୍ୟ ତାଙ୍କର ଶର୍ଣ୍ଣା
ତାଙ୍କ ବିନୁ ଦଶ କେ ଅଛି ନାହିଁ ଅନ୍ୟ ରଖନ୍ତା ।୨।
ବଡାଣି କୁଳରେ ଜନମ କାହୁଁ ଜାଣିବ ଗତି ।
ମୋର ବେଳ ମୁଁ କହୁନାହିଁ ଭଣିଛନ୍ତି ଅଚ୍ୟୁତ ।୩।
ଅମରାବତୀ ପର୍ବତ ସେ ଯେଣୁ ନିଗମ ସ୍ଥାନ ।
ସେହି ପର୍ବତେ ଅଛନ୍ତି ସାଧୁ ଯୋଗୀ ଋଷିଗଣ ।୪।
ଅମରାବତୀ ପର୍ବତ ସେ ଯେ ନିଗମ ଭୂଇଁ ।
ସୁବର୍ଣ୍ଣର ଚମ୍ପା ଅଛି ସନ୍ଧ୍ୟା କେପାତରେ କହି ।୫।
ବେଲ ବଉଳ ବର କୋଳି ତହିଁ ନିକଟେ ଅଛି
ହୁଙ୍କାର ସ୍ୱରପରେ ନୃସିଂହ ତହିଁ କରିଦେଇଛି ।୬।
ବାରହାତ ଢେର ଅଙ୍କୁଳ ହୁଙ୍କା ହେଉଛି ଉଚ୍ଚ ।
ତେବେ ଜାଣିବୁ ରାମଚନ୍ଦ୍ର କଳକୀର ପ୍ରକାଶ । ।୭।
ଉତ୍ତରା କଙ୍କଣ ଥିବଟି ବନ୍ଧୁ ଣା ଶିଖର ।
ଶୂନ୍ୟଧ୍ୱଜା ଦୃଶ୍ୟ ହୋଇବ କଷ୍ଟେ ଦିବସ ।୮ ।
ଏ ସଙ୍କେତ ଯେବେ ଦେଖିବୁ ରାମ ଯିବୁ ପରତେ ।
କହଇ ଚାମର ହାଡିଆ ପ୍ରଭୁ ହୋ ପାଦଗତେ ।୯ ।



ଲଗିଛି ଲଖ ଲୀଳାଟଳେରେ । ଅକାକାର ମନ୍ଦ୍ରନ୍ୟ ଦେହରେ ଦେ
ଦଶଦ୍ୱାର ବାଟ ଦଶ ଯେ କବାଟ ଯିବ କୁ ସଙ୍କଟ ବ୍ରହ୍ମରନ୍ଧ୍ରରେ
ଫୁଟାଇ ଜଣି ଓଲଟ ଉଜାଣି ଓଲଟି ରହିଛି ତଥି ମଧ୍ୟରେ
ଅବାରଣ ଶୁଣି ବାଟେ ନୁହେଁ ଉନ୍ମୁଖି ଚାହିଁ ଚରେ

Digitized by srujanika@gmail.com

ସେଠାରେ । ୩ । ଗୋଳ ଚେରରେ, ଯେ ତାର ଦୁଗ୍ଧ ଝରେ ଅମନ ଶିଖରେ ସେ ବାସ କରେ । ତହିଁ ଝର ଜଳ ଲହଣ୍ଡି ପ୍ରବଳ ଲାଗିଛି ଭଜନ ଶୂନ୍ୟ ମନ୍ଦିରରେ । ୪ । କହଇ ଅଚ୍ୟୁତ ଅଜ୍ଞାନ ଅଟଇ ଶବଦକୁ ଭଜ ସପତାଙ୍ଗରେ । ୫ ।



ଦୁର୍ଲ୍ଲଭ ଏ ଜୀବଘଟ ଏଥୁ ଶ୍ରେଷ୍ଠ ନାହିଁ ।
ସର୍ବ ଜୀବ ସ୍ରିଷ୍ଟି ନାମବ୍ରହ୍ମ ଅଛି ତହିଁ । ୧ ।
ବଇଷ୍ଣବ ପ୍ରାଣା ନାମ ଆଶ୍ରା କଲ ଲୋକ ।
ଦୁର୍ଲ୍ଲଭ ତାର ଜୀବନ ମୁକତି ସୂଚକ । ୨ ।
ଠୁଳା ଶନ୍ୟପରେ ନତ୍ୟ ଘର ଯେ ଲାଗିଛି ।
ଅମନ ଶିଖରେ ନେଇ ଗଜକୁ ରଖିଛି । ୩ ।
ଫୁଙ୍କା ବନ୍ଧ ଜିଣି ଭୁଞ୍ଜି ବେଗେ ଚଳିପିବୁ ।
ଅମନ ଶିଖରେ ନେଇ ଗଜକୁ ବାନ୍ଧିବୁ । ୪ ।
ସୁଖରନ୍ଧ୍ର ବାଟେ ସେହୁ ଗୋଲୋକକୁ ଯାଇ ।
ଦେଖୁ ଦେଖୁ ମତ୍ତଗଜ ଗମନ କରନ୍ତି । ୫ ।
ଫୁଙ୍କା ବନ୍ଧ ପରେ ନତ୍ୟ ଘର ଯେ ଲାଗିଛି ।
ଅଗମ୍ୟ ଭୁବନ କେହ୍ବ ଗମି ନ ପାରନ୍ତି । ୬ ।
ନିଷ୍ଠଳ ହୋଇଣ ଭୁଞ୍ଜ ବେଗେ ଚଳିପିବୁ ।
ଅମର ମନ୍ଦିରେ ସ୍ଥାପି ଗଜକୁ ବାନ୍ଧିବୁ । ୭ ।
ଭୂତ ପୃଥ୍ୱୀ ଅପ ତେଜ ବାୟୁ ଯେ ଆକାଶ ।
ପଞ୍ଚଭୂତ ଯୋଗକର ଦେହଟି ପ୍ରକାଶ । ୮ ।
ନିଷ୍ଠଳ ଆସନେ ବସି ଚଞ୍ଚଳ କାଟିବୁ ।
ଜାନୁଯୁଗଳେ ବେନି ପାଣିକୁ ଥାପିବୁ । ୯ ।
ସଳଖି ରଖି ଖୋଳ ଡ଼ମ୍ବରୁ ମେରୁଦଣ୍ଡ ।
ସୁଷୁମ୍ନା ସନ୍ଧିରେ ସେ ନଟକ ପିଣ୍ଡ । ୧୦ ।

Digitized by srujanika@gmail.com

ଆଜ୍ଞା ଚକ୍ର ସ୍ଥାନେ ମନ୍ତ୍ରକୁ ବାରେଣୀ ରଞ୍ଜିବ ।
ଆପଣାର ନାସିକା ଅଗ୍ରକୁ ଦୃଷ୍ଟି ଦେଇ । ୧୧ ।
ଧ୍ୟାନରେ ଭେଦିବୁ ନାଦ ତେବେ ସିନା ସାର ।
ନାମ ରୂପ ଜ୍ୟୋତିରୁ ଦେଖିବୁଟି ମନୋହର । ୧୨ ।
ଓଁକାରକୁ ଧାରଣ ଯେ ଅଣଗୁଣ ହର ।
ଅମନ ଶିଖରେ ମନଗଜ ରୁଦ୍ଧ କର । ୧୩ ।
ଆଖି ଥାଇଁ ଥାଇଁ ଲୋକେ ହୋଇଛନ୍ତି ଅନ୍ଧ ।
ଚେତା ଥାଇଁ ଥାଇଁ ଲୋକେ ନ ବାନ୍ଧନ୍ତି ବନ୍ଧ । ୧୪ ।
ଶୂନ୍ୟରେ ଖେଳନ୍ତି ହଂସ ଶୂନ୍ୟରେ ଖେଳୁଛି
ଗଗନ ଶିଖରେ ନେଇ ବସାଇବୁ ମନ । ୧୫ ।
ତେବେ ସେ ପରମ ଆତ୍ମା ଦୃଶ୍ୟମାନ ଥିବ ।
କମଳ କେଶରେ ପଶି ମାଧୁର୍ଯ୍ୟ କରିବ । ୧୬ ।

କହଇ ଅଚ୍ୟୁତ ଯେ ଦାସ । ପଦ୍ମ ପାଦରେ କର ଆଶ ॥
ହେ ପ୍ରଭୁ ନିସ୍ତାରିବା ମୂର୍ତ୍ତି । ଆତ୍ମର କଥା ପଚାରନ୍ତି ॥
ଧର୍ମକୁ ଧର ଚେତ ଚେତି । ଧର୍ମର ବିନା ନାହିଁ ଗତି ॥
ଧର୍ମ ନାବରେ ବେଗେ ବସ । ତେବେ ତାରିବେ ହୃଷୀକେଶ ॥
ହରିଙ୍କ ବିନୁ ନାହିଁ ଗତି । କ୍ଷମା କରିବେ ଯଦୁପତି ॥
କହଇ ଅଚ୍ୟୁତ ଯେ ଦାସ । ପଦ୍ମ ପାଦରେ କର ଆଶ ॥
ହେ ପ୍ରଭୁ ନିସ୍ତାରିବା ମୂର୍ତ୍ତି । ଆତ୍ମର କଥା ପଚାରନ୍ତି ॥
ଶୂନ୍ୟରେ ଶୂନ୍ୟ ଯେ ମିଶିବ । ଅରୂପାନନ୍ଦ ପ୍ରକାଶିବ ॥
କହଇ ଅଚ୍ୟୁତ ଯେ ଦାସ । ପଦ୍ମପାଦରେ କର ଆଶ ॥
ଏ ଗୀତ ହୋଇଲାକ ଶେଷ । ଭଣଇ ଅଚ୍ୟୁତାନନ୍ଦ ଦାସ ॥

— ସମାପ୍ତ —

ମୁଦ୍ରାକର—ଚନ୍ଦ୍ରିକାଦେବୀ ପ୍ରେସ୍, କଟକ—୯

Digitized by srujanika@gmail.com

